# କୁମୁଦଦେଈ କାନ୍ଦ

{ ଶୁଣିଲେ ଏ କାନ୍ଦ ମା ମାଉସୀ ।
ନିଶ୍ଚୟ କାନ୍ଦିବେ ପଦ୍ଧଢ଼େ ବସି ॥ }

ଶ୍ରୀ ରାମଚନ୍ଦ୍ର ଦାସଙ୍କ ଦ୍ୱାରା ରଚିତ ଓ

ଦ୍ୱିତୀୟବାର ପ୍ରକାଶିତ ।

କଟକ, ଅରୁଣୋଦୟ ପ୍ରେସରେ ମୁଦ୍ରିତ ।



ପ୍ରାପ୍ତିସ୍ଥାନ—
ଅରୁଣୋଦୟ ପୁସ୍ତକାଳୟ ।
ବାଲୁବଜାର ପୋଃ ଚାନ୍ଦନୀଚୌକ କଟକ ।
୧୯୩୩

ମୂଲ୍ୟ ଟ ·୧୯ ଉଣିଶପଇସା ମାତ୍ର ।

# କୁମୁଦ ଦେଈର କାନ୍ଦ ।

ଶୁଣ ଜନେ ମନ ଦେଇ । ବିଶେଷେ କାନ୍ଦେ କୁମୁଦ ଦେଈ ସେ
ମୋ ମାଆରାଣି । ପାଶରୁ ଦେଉଛ ତଡ଼ି କପାଇଁ ଗୋ । ୧ ।

ଏବେ କି ବୁଦ୍ଧି କରିବି । କେଉଁଆଡ଼େ ଯିବି କାହିଁ ରହିବି ଗୋ ।
ମୋ ମାଆରାଣି । କାହା ମୁଖ ଦେଖି ଦିନ କାଟିବି ଗୋ । ୨ ।

ପିଲାଦିନୁ ଏଡ଼େ କଲ । କେତେ ଯତନରେ ବଢ଼ାଇ ଥିଲ ଗୋ
ମୋ ମାଆରାଣି । ଏବେ କପାଁ ମୋତେ ଏ ଦୁଃଖ ଦେଲ ଗୋ । ୩ ।

କେଉଁ ଦୋଷ କଲି ମୁହିଁ । ନଈ ସେପାରିକି ଦିଅ ପଠାଇ ଗୋ ।
ମୋ ମାଆରାଣି । ଚିତ୍ତରେ ଏବେତ ନିର୍ଦ୍ଦୟ ହୋଇ ଗୋ । ୪ ।

ଦଣ୍ଡେ ନ ଦେଖିଲେ ପରା । ସାହି ସାହି ଖୋଜି ପଡ଼େ ଡାକରା ଗୋ ।
ମୋ ମାଆରାଣି । କେତେ ଲୋକେ କରି କେତେ ପରିରା ଗୋ । ୪ ।

ନ ଦେଖିଲେ ପର କେବେ । କେତେ ବ୍ୟସ୍ତ ହେଉ ଥାଉତ ଚିତ୍ତେ
ଗୋ । ମୋ ମାଆରାଣି । ଏଣିକି ମୂର୍ଚ୍ଛି ଛ କି ଭଳି ମୋତେ ଗୋ ।୬।

ଯଦି କରିଥିଲି ଦୋଷ । ବିଷ ଦେଇ କରି ଥାଆନ୍ତ ନାଶ ଗୋ ।
ମୋ ମାଆରାଣି । ତଡ଼ିଦିଅ କପାଁ ଦୂର ବିଦେଶ ଗୋ । ୭ ।

କୁମୁଦ ଦେଈର ଶୋକ । ଶୁଣି ମାତା କାନ୍ଦି କହେ ଅଧିକ ସେ ।
ମୋର କୁମୁଦ । ଆଉ ତୁ ନ ବୁହା ନେତ୍ରୁ ଲୋତକ ଗୋ । ୮ ।

କି କହୁ ମୋତେ କୁମୁଦ । ମୋ ମନ ବେଦନା ଜାଣେ ମୋ ହୃଦ
ଗୋ । ମୋ ଦୁଃଖିଧନ । ନ କରି ମୋ ମାଆ ଖେଦ ଗୋ । ୯ ।

ତୁ ମୋର ନେତ୍ର ପିତୁଳା । କରିଥିଲି କଣ୍ଠ ରତନମାଳା ଲୋ ।
କୁମୁଦ ଦେଇ । କାଟିଦେଇ ଅଜ ଯିବୁ ମୋ ଗଳା ଲୋ । ୧୦ ।
କେଉଁ ବୁଦ୍ଧି କରିବଇଁ । କ ଉପାୟେ ଧନ ବଞ୍ଚିବ ମୁହିଁ ଲୋ ।
କୁମୁଦ ଦେଇ । ଅସ୍ପ ମୁଁ ମନେ କରିପାରୁ ନାହିଁ ଲୋ । ୧୧ ।
କ୍ଷଣେ ନ ଦେଖିଲେ ତୋତେ । ମୋ ମନ ବିକଳ ହୁଅଇ କେତେ
ଲୋ । କୁମୁଦ ଦେଇ । ଏବେ କାଟିବି ମୁଁ ଧନ କେମନ୍ତେ ଲୋ ।।
ମୋ ଘର ଚନ୍ଦ୍ରମା ତୁହି । ଅହୁଁ ଯିବୁ ଅମାବାସ୍ୟା କରାଇ ଲୋ ।
କୁମୁଦ ଦେଇ । ଘୋର ଦୁଃଖ ସିନ୍ଧୁମଧ୍ୟେ ଭସାଇ ଲୋ । ୧୩ ।
କେତେ ଦେବାଦେବୀ ମୁହିଁ । ସେବାକରି ତୋତେ ପାଇଥିଲଇଁ
ଲୋ । କୁମୁଦ ଦେଇ । ଦଶମାସ ଗର୍ଭ କଷଣ ସହି ଲୋ । ୧୪ ।
ସ୍ତନଭାଙ୍ଗି କ୍ଷୀର ଦେଲି । ସାତୁଷ୍ଠା ପୁଅର ଯନ ସାରିଲି ଲୋ ।
କୁମୁଦ ଦେଇ । କେତେ ସ୍ନେହେ ତୋତେ ବଢ଼ାଇ ଥିଲି ଲୋ । ୧୫ ।
ତୋ ପାଇଁ ଲୋ ଗେହ୍ଲାମଣି । କେତେ ତୀର୍ଥ ବ୍ରତ କଲି ଭ୍ରମଣି
ଲୋ । କୁମୁଦ ଦେଇ । ତାହା ମୋର ମନ ଅଛଇ ଜାଣି ଲୋ । ୧୬ ।
ସେ କଥା ମନେ ପଡ଼ୁଛି । ଫଟୋଇ ମୋହର ପ୍ରାଣ ଜଳୁଛି ଲୋ ।
କୁମୁଦ ଦେଇ । ଏବେ କେଉଁପରି ଦେବି ମୁରୁଛି ଲୋ । ୧୭ ।
ଏବେଳେ ବଢ଼ମା ଅପି । କୁମୁଦ ଦେଇଙ୍କ କହଇ ତୋଷି ଲୋ ।
ମୋ ଗଳାମାଳୀ । ଅହେ ତୁ ନ କାନ୍ଦ ମୋ ଶଶିହାସି ଲୋ । ୧୮ ।
ମୋ ମାଆସିଣି ମୋ ଧନ । ବୃଥା ତୁ କାହିଁକି କରୁ କ୍ରନ୍ଦନ ଲୋ ।
କୁମୁଦ ଦେଇ । ସଂସାରେ ଏହାତ ବିଧି ଭିଆଣ ଲୋ । ୧୯ ।
ପରପୁଅ ପରଝିଅ । ବାପଘର ହୁଏ ଏହାତ ନ୍ୟାୟ ଲୋ ।
କୁମୁଦ ଦେଇ । ଏବେ ପତିଘରେ ସୁଖେ ତୁ ଯାଅ ଲୋ । ୨୦ ।

କାନ୍ତ ଘେନ କର ଘର । କାହିଁକି ରୋଦନ କରୁ ଅପାର ଲୋ ।
କୁମୁଦ ଦେଇ । ଷୀଣ ହେବ ପିନା ଦେହ ତୋହର ଲୋ । ୨୧ ।
ନ କାନ୍ଦ ମୋ ଦୁଃଖିଧନ । ଶାଶୁ ଘରେ କାନ୍ତ ଅନନ୍ଦେ ଧନଲୋ
କୁମୁଦ ଦେଇ । ନ କର ମୋ ମାଆ ବିରସ ମନ ଲୋ । ୨୨ ।
ପତି ଭକ୍ତିରେ ତୁ ଥିବୁ । ଶାଶୁ ଶ୍ୱଶୁର ପାଦ ସେବୁଥିବୁ ଲୋ ।
କୁମୁଦ ଦେଇ । କେବେହେ ଅଳସ ହୃଦେ ନ ରଖିବୁ ଲୋ । ୨୩ ।
ଭଲ ଦେଖି କର ଘର । ବିଭା ଦେଇଛନ୍ତି ପିତା ତୋହର ଲୋ
କୁମୁଦ ଦେଇ । ମନୁ ଚିନ୍ତା ଦୁଃଖ କର ତୁ ଦୂର ଲୋ । ୨୪ ।
ସକାଳୁ ନିତି ଉଠିବୁ । ପ୍ରଥମେ ମୁହଁଗୋଟି ଧୋଇନେବୁ ଲୋ ।
କୁମୁଦ ଦେଇ । ତା ପରେ ଗୋମୟ ପାଣି ସିଞ୍ଚିବୁ ଲୋ । ୨୫ ।
ତହୁଁ ଖଡିକା ପହଁସି । ଘେନ ଗୃହଅଙ୍ଗ ଖରିକ ହୁସି ଲୋ ।
କୁମୁଦ ଦେଇ । ଶାଧୂଆ ସାରବୁ ନ ଅପୁ ଖସି ଲୋ । ୨୬ ।
ବଡ଼ମା ପାଶରୁ ଦୂତ । ଶୁଣିଣ କୁମୁଦ କାନ୍ଦେ ବହୁତ ଗୋ ।
ଏ ବଡ଼ମାଆ । କାହିଁକି ହୋଇଲ ନିର୍ଦ୍ଦୟ ଚିତ୍ତ ଗୋ । ୨୭ ।
କେତେ ଯତ୍ନେ ବଢ଼ାଇଲ । ଏଣିକି କାହିଁକି କଂସାଇ ହେଲ ଗୋ ।
ଏ ବଡ଼ମାଆ । କେଉଁ ଦୋଷେ ଦୂରେ ପଠାଇ ଦେଲ ଗୋ । ୨୮ ।
ତୁମ୍ଭେ ପରି ମୋତେ ଦଣ୍ଡେ । ନ ଦେଖିଲେ ପ୍ରାଣ ନଧର ପିଣ୍ଡେ ଗୋ ।
ଏ ବଡ଼ମାଆ । କେତେ ଡାକୁଥାଅ ବୁଲିଣ ଦାଣ୍ଡେ ଗୋ । ୨୯ ।
ସେ ସ୍ନେହ କେଣିକି ଗଲା । କପାଁଇ ଦାରୁଣ ହୃଦୟ ହେଲା ଗୋ ।
ଏ ବଡ଼ମାଆ । କେବେହେ ଏପରି ଦେଖା ନ ଥିଲା ଗୋ । ୩୦ ।
ଏ ସମୟେ ଖୁଡ଼ି ଅସି । କୋମଳ ବଚନ ତାହାକୁ ଭାଷି ସେ ।
ଅଲୋ କୁମୁଦ । ବୃଥାରେ ଏତେ ତୁ କାନ୍ଦନା ବସି ଲୋ । ୩୧ ।

କେଉଁକଥା ପାଇଁ ଏତେ । କ୍ରନ୍ଦନ କରୁଛ ମୋ ଧନ ଏତେ ଲୋ ।
କୁମୁଦ ଦେଇ । କହ ତାହା ଫେଡ ମୋର ଅଗ୍ରତେ । ୩୨ ।

ନ କାନ୍ଦ ମୋ ବାଇଅଣି । ଭଲ କଥାକୁ ନ କର ଭ୍ରଲେଣି ଲୋ ।
କୁମୁଦ ଦେଇ । ଚିନ୍ତାଦୁଃଖ ତେଜ ହୁଅ ତୁ ତୁନ ଲୋ । ୩୩ ।

ଯାହା ଇଚ୍ଛା ହୁଏ ତୋର । ବାଛି ବାଛି ଘରୁ ନିଅ ମୋହର ଲୋ
କୁମୁଦ ଦେଇ । ସୁଖେ ଯାଅ ମାଆ ଶ୍ୱଶୁର ଘର ଲୋ । ୩୪ ।

ଖୁଡ଼ପାଶୁ ଏହା ଶୁଣି । ଉଚ୍ଚରେ କୁମୁଦ କାନ୍ଦେ ବାହୁନି ସେ ।
ଗୋ ସାନ ଖୁଡ଼ । କିପାଇଁ ପାଶରୁ ଦେଉଛ ତଡ ଗୋ । ୩୫ ।

ତୁମ୍ଭର ଯେ ସ୍ନେହ ଥିଲା । ମୋ ପ୍ରତି ତା ଏବେ କେଣିକି ଗଲାଗୋ
ଏ ସାନଖୁଡ଼ । ସବୁ ସ୍ନେହ ଏବେ ଜଣା ପଡ଼ିଲା ଗୋ । ୩୬ ।

ତୁମ୍ଭକଥା ଯାକ ମୋର । ମନରେ ପଡ଼ୁଥିବ ନିରନ୍ତର ଗୋ ।
ଏ ସାନଖୁଡ଼ । ବଞ୍ଚିବି ସେଠାରେ କେଉଁ ପ୍ରକାର ଗୋ । ୩୭ ।

ତୁମ୍ଭପରି କିଏ ଦେବ । ଜଳଖିଆ ଆଣି ମୋ ହାତେ ଦେବ ଗୋ ।
ଏ ସାନଖୁଡ଼ । ସକାଳୁ ଡ଼ାକି ମୋତେ ଉଠାଇବ ଗୋ । ୩୮ ।

କେ ପୁଣି ଗାଧୋଇ ଦେବ । କେ ତେଲ ହଳଦି ଲଗାଇ ଦେବ ଗୋ
ଏ ସାନଖୁଡ଼ । ତୁମ୍ଭଗୁଣ ଗୁଣି ମୋ ପ୍ରାଣ ଯିବ ଗୋ । ୩୯ ।

କିଏସେ ବେଶେଇଣାଲେ । କାନ୍ଧାଣି କହିବ ବାନ୍ଧିବା ବେଳେ ଗୋ
ଏ ସାନଖୁଡ଼ । ହସାଇ ରସାଇ ବଞ୍ଚିତ ଗେଲେ ଗୋ । ୪୦ ।

ଏହିକଥା ଯେ ତୁମ୍ଭର । ମନେ ପଡ଼ୁଥିବ ନିରତେ ମୋର ଗୋ ।
ଏ ନୂଆଖୁଡ଼ । କିପାଁଇ କଲ ଏମନ୍ତ ନିଷ୍ଠୁର ଗୋ । ୪୧ ।

କିଏସେ ଦାଦାଙ୍କୁ କହି । ନେଲି ଲୁଗାପାଟ ଦେବ ଅଣାଇ ଗୋ ।
ଏ ସାନଖୁଡ଼ । କା ଆଗେ ଅଳି ବା କରିବି ମୁହିଁ ଗୋ । ୪୨ ।

କୁମୁଦ କାନ୍ଦ ଏପରି । ଶୁଣି ବଡ଼ ବୋହୂ, ସହି ନ ପାରି ସେ ।
କାନ୍ଦି କହଇ । ନ କାନ୍ଦ ବିକଳେ କୁମୁଦ ଦେଇ ଗୋ ଲୁହ ବୁହାଇ ।
ଏତେ ବେଦନ କାହିଁକି । କରୁଛ ଚିତ୍ତରେ ଚନ୍ଦ୍ରମାମୁଖି ଗୋ ।
କୁମୁଦଦେଇ । ନ କାନ୍ଦ ମୋବଣ ଆଉ ଏଣିକି ଗୋ । ୪୪ ।
ତୁମ୍ଭେ ମୋ ଜୀବନଧନ । ମୋ ସଙ୍ଗେ ଖେଳୁଥିଲ ପ୍ରତିଦିନ ଗୋ ।
କୁମୁଦ ଦେଇ । କି କରିବ ମୋର କପାଳସ୍ଥାନ ଗୋ । ୪୫ ।
କିଏ ଦିନ ହୋଇ ଗଲେ । ବାସି କାମ ସାରି ଡ଼ାକିବ ଭଲେ ଗୋ
କୁମୁଦ ଦେଇ । ତୁମ୍ଭଗୁଣ ନ ସରିବ କହିଲେ ଗୋ । ୪୬ ।
ରୁଷି ବସିଥିଲେ ମୁହିଁ । କିଏ ହାତ ଧରି ନେବ ବୁଝାଇ ଗୋ ।
କୁମୁଦ ଦେଇ । ତୁମ୍ଭର ଏ କଥା ମନେ ପଡ଼ଇ ଗୋ ୪୭ ।
ତୁମ୍ଭେ ସ୍ନେହ କର ଯେତେ । ସେପରି କରିବ କିଏସେ ମୋତେ
ଗୋ କୁମୁଦ ଦେଇ । ଘୋରଦୁଃଖ ଦେଇ ଯାଅ ନିରତେ । ୪୮ ।
ଭାଉଜ କନ୍ଦନ ଶୁଣି । କାନ୍ଦି ଶୋକେ କହେ କୁମୁଦ ପୁଣି ଗୋ ।
ଏ ନୂଆବୋହୂ । କି ବିଚାର କଲେ ବାପା ଜନନୀ ଗୋ । ୪୯ ।
ଜାଣୁ ଜାଣୁ ମୋତେ ନେଇ । କୁମ୍ଭୀର ନଈରେ ଦେଲେ ଭସାଇ
ଗୋ । ଏ ନୂଆବୋହୂ । ଆଉ କି ଦେଖିବି ତୁମ୍ଭକୁ ମୁହିଁ ଗୋ । ୫୦ ।
ଛତୋଉପିଠା ଯେ ଅଣନେଉଥା । ଆଉ କି ଦେଖିବି ଅମୃତକୋଠା
ଏ ନୂଆବୋହୂ । ମୋହର କପାଳ ଏଡ଼କି ଫଟା ଗୋ । ୫୧ ।
ତୁମ୍ଭପରି କିଏ ହେବ । ସୁବାସ ତେଲ କେ ଲଗାଇ ଦେବ ଗୋ ।
ଏ ବଡ଼ବୋହୂ । କେଶ ଯତ୍ନେ କେ କୁଣ୍ଡାଇ ବାନ୍ଧିବ ଗୋ । ୫୨ ।
ଯାତରକୁ ଗଲେ ଭାଇ । ସୁନ୍ଦର ଖେଳଣା ଦିଅ ମଗାଇ ଗୋ ।
ଏ ନୂଆବୋହୂ । ମୋହର ପିନା ସେ ଖେଳିବା ପାଇଁ ଗୋ । ୫୩ ।

ଥାଉ ମୋତେ କଏ ଦେବ । ଖେଳିବା ପାଇଁକି କହୁଣ ଥିବ ଗୋ
ଏ ନୂଆବୋହୂ । ଏହା ଭାଳି୨ ମୋ ପ୍ରାଣ ଯିବ ଗୋ । ୫୩ ।

ଏ ବେଳେ ବାପା ଅଇଲେ । ବହୁତ ପ୍ରବୋଧ ବାଣୀ କହିଲେଗୋ
ଅଲୋ କୁମୁଦ । ନ କାନ୍ଦ ଆଉ ତୁ ଏତେ ଝିକଲେ ଗୋ । ୫୫ ।

ଛଅମାସ ପରେ ଯିବ । ଝୁଲଣଯାତ୍ରାକୁ ଘେନ ଅସିବ ଲୋ ।
ମୋର କୁମୁଦ । କଛି ତୁ ଭାବନା ନ କର ଚିତ୍ତେ ଲୋ । ୫୬ ।

ପିତା ବାଣୀ ଶୁଣି କର । କୁମୁଦ କାନ୍ଦଣ କହେ ଏପରି ସେ ।
ବାପା ମୋହର । କପାଁ ଏହି ଦୁଃଖ ଦେଲ ବାପ୍ପ ହେ । ୫୭ ।

କି ଦୋଷ ମୋର ଦେଖିଲ । କାହିଁକି ମୋଠାରେ ନିର୍ଦ୍ଦୟ ହେଲ
ହେ । ବାପା ମୋହର । ଦୂର ବିଦେଶକୁ ପଠାଇ ଦେଲ ହେ । ୫୮ ।

କେତେସ୍ନେହ ପରି କର । ସେ ସ୍ନେହ ସବୁ କି ହେଲା ପାଶୋର ହେ,
ବାପା ମୋହର । କରିବି କି ବୁଦ୍ଧି କୁହ ଏଥର ହେ । ୫୯ ।

ବୁଲୁଥିଲେ ମୁଁ ଖଟରେ । କିଏ ଡାକି ନେଇ ଯିବ ସଙ୍ଗତର ହେ
ବାପା ମୋହର । ବୋଧି ବସାଇବ ମୋତେ ଗ୍ଲୁଇରେ ହେ । ୬୧ ।

କାପାଶେ ଅଳି କରିବି । ସୁନ୍ଦର ପଦାର୍ଥ ମାଗିଣ ନେବି ହେ ।
ବାପା ମୋହର । କପାଁ ଦୂର ଦେଶେ ଦେଲ କି ଭାବି ହେ । ୬୨ ।

ଏହା ଯେବେ ଭାଳିଥିଲ । ବିଷ ଦେଇ କାହିଁକି ନ ମାରିଲ ହେ ।
ବାପା ମୋହର । ଏତେବେଳେ କପାଁ ଏକଷ୍ଟ ଦେଲ ହେ । ୬୩ ।

ଭାଇ ଏ ସମୟେ ଅସି । କୁମୁଦ ଦେଈକି କହଇ ତୋଷି ସେ ।
ଅଲୋ କୁମୁଦ । କାନ୍ଦୁଅଛୁ କପାଁ ଏତେ ତୁ ବସି ଲୋ । ୬୪ ।

ନ କର ଆଉ କ୍ରନ୍ଦନ । ତୋ କାନ୍ଦରେ ହୁଏ ବିକଳ ମନ ଲୋ
କୁମୁଦ ଦେଇ । କହିବା ମୋହର ବଚନ ଘେନ ଲୋ । ୬୫ ।

ଖ୍ୱଇଠାରୁ ଏହା ଶୁଣି । କୁମୁଦ କହଇ କ୍ରନ୍ଦନେ ବାଣୀ ସେ ।
ହେ ବଢ଼ଖ୍ୱଇ । କ ବସ୍ତୁର କଲ ମୋଠାରେ ପୁଣି ହେ । ୬୬ ।
ପଠାଇ ଦେଲ ହୂରକୁ । ଆଉ କ ଦେଖିବ ତୁମ୍ଭମାନଙ୍କୁ ହେ ।
ଖ୍ୱଇ ମୋହର । ଶୁଣିବ କେ ଆଉ ମୋର ଅଳକୁ ହେ । ୬୭ ।
ଏକାଳେ ସହ୍ୱ ସଙ୍ଗାତ । ଅସି କୁମୁଦକୁ କହନ୍ତି ହତ ଗୋ ।
ପ୍ରାଣ ସଙ୍ଗାତ । କାହିଁକି ମନରେ ହୁଅ ଦୁଃଖିତ ଗୋ । ୬୮ ।
ଯେତେଦିନ ଘରେ ଥିଲ । ଏଣିକି ତୁମ୍ଭେତ ବଭ ହୋଇଲ ଗୋ
ପ୍ରାଣ ସଙ୍ଗାତ । ହର୍ଷେ ଏବେ ଶାଶୁଘରକୁ ଚଳ ଗୋ । ୬୯ ।
ସବୁ ଚନ୍ତାକର ଦୂର । ଏଣିକି କାନ୍ତେ ସେନ କର ଘର ଗୋ ।
ପ୍ରାଣ ସଙ୍ଗାତ । ସେ ଧନା ସକଳ ଏବେ ବିସ୍ମର ଗୋ । ୭୦ ।
ସହ୍ୱ ସଙ୍ଗାତଙ୍କ ହତ । ଶୁଣିଣ କୁମୁଦ କାନ୍ଦେ ବହୁତ ଗୋ ।
ସହ୍ୱ ସଙ୍ଗାତ । କପାଁ ଏବେ ହେଲ ନର୍ଦ୍ଦୟ ଚତ୍ତ ଗୋ । ୭୧ ।
ତୁମ୍ଭ ଆମ୍ଭ ଯେଉଁ ଭ୍ୱାବ । ତାହା ଗୁଣି ନତ୍ୟ ମୋ ପ୍ରାଣ ଯିବ ଗୋ
ସଙ୍ଗାତ ମୋର । କପାଳେ ଏହା ବିହ୍ୱଳା ଦଇବ ଗୋ । ୭୨ ।
ଗୋ ବୃନ୍ଦ ଅଶୋକା କଢ଼ି । କପାଁ ତୁମ୍ଭ ପାଶୁ ଦେଉଛ ତଡ଼ି ଗୋ
ଅଶୋକା କଢ଼ି । କେତେ ଡ଼ାକୁଥିଲ ଘଡ଼ିକ ଘଡ଼ି ଗୋ । ୭୩ ।
ଗୋ ବଉଳ ଚମ୍ପାଫୁଲ । କାହିଁକି ମୋଠାରେ ନଷ୍ଠୁର ହେଲ ଗୋ
ଏ ଆମ୍ବକସି । କେଉଁ ଦୋଷ ମୋର ଏବେ ଦେଖିଲ ଗୋ ।୭୪।
ଏ ବେଳରେ ଯାଇଁ ଅସି । ବୋଧନ୍ତି ସାହର ମା ମାଉସି ଲୋ ।
କୁମୁଦ ଦେଇ । ନ କାନ୍ଦ ଅଉ ତୁ ଡ଼କଲେ ବସି ଲୋ । ୭୫ ।
ଯାଅ ଚଢ଼ି ଖଡ଼ଖଡ଼ । ବେଳ ହୁଏ ଖସ ଅସୁଛି ମାଡ ଲୋ ।
କୁମୁଦ ଦେଇ । କପାଁ ଏତେ ତୁ କାନ୍ଦୁ ମୁଣ୍ଡକୋଡ ଲୋ । ୭୬ ।

ଶାଶୁଘରେ ସବୁ ତୋର । ବାପଘରେ କସ ଅଛ ବସ୍ତୁର ଲୋ ।
କୁମୁଦ ଦେଇ । ସୁଖେ କାଳ୍ଯେ ସେନ କର ତୁ ଘର ଲୋ । ୭୭ ।
ସବୁର ବଚନ ଶୁଣ । ଉଚ୍ଚରେ କୁମୁଦ କାନ୍ଦେ ବାନ୍ଧବ ଗୋ ।
ମାଆ ମାଉସି । ସବେଁ କୁହ ଏଡ଼େ ନର୍ଦ୍ଦୟ ବାଣୀ ଗୋ । ୭୮ ।
ଏକାଳେ ଆଣି ସବାର । ସମସ୍ତ କୁମୁଦ ହାତକୁ ଧର ସେ ।
ଦେଲେ ବସାଇ । ତୁନ ହୁଅ ବୋଲ ବନ୍ଧୁ ବୁଝାଇ ସେ । ୭୯ ।
ବହୁତ ଯୌତୁକ ଦେଲେ । କୁମୁଦ ଶାଶୁଘରରେ ମିଳଲେ ସେ ।
ହେ ସାଧୁଜନେ । ରାମଚନ୍ଦ୍ର ଏହୁ କାନ୍ଦରେ ବୋଲେ ହେ । ୮୦ ।

ସମ୍ପୂର୍ଣ୍ଣ ।



କଟକ ଅରୁଣୋଦୟ ପ୍ରେସରେ ଶ୍ରୀ ନତ୍ୟାନନ୍ଦ ସାହୁଙ୍କ ଦ୍ୱାରା ମୁଦ୍ରିତ

# ବିଜ୍ଞାପନ ।

ନିମ୍ନଲିଖିତ ପୁସ୍ତକ ମାନ କଟକ ବାଲୁବଜାରସ୍ଥ ଅରୁଣୋଦୟ ଯନ୍ତ୍ରାଳୟର ପୁସ୍ତକାଳୟରେ ବିକ୍ରୟାର୍ଥେ ପ୍ରସ୍ତୁତ ଅଛି । ଗ୍ରାହକଗଣ ଚାହିଁଲେ ଅନାୟାସେ ପ୍ରାପ୍ତ ହେବେ

| | | | |
|---|---|---|---|
| ଜ୍ଞାନ ସାଗର | ଟ° । | ବୃହତ୍ ସ୍ୱମଣ୍ଟା | ଟ° / |
| ବାରମାସ ଗୀତ | ଟ° / | ବୃହସ୍ତ ଭ୍ରମରା କଳି | ଟ° (୯ |
| ଭଜନସାର ସଂଗ୍ରହ ୧ମ | ଟ°✓୨ | ଶାସ୍ତ୍ର ବୋଧ କଳି | ଟ° (/ |
| ଛନ୍ଦଭାଗ ୧ମ | ଟ° /୯ | ସ୍ୱମଣ୍ଟଦର୍ପ | ଟ° ୯ |
| ଐଜନ ୨ୟ | ଟ° ✓୩ | ଲଙ୍କାବୋଇଲି | ଟ° (୨ |
| ଅକ୍ରୂରବୋଲି | ଟ° / | ଶ୍ରୀକୃଷ୍ଣଙ୍କ ବନଭୋଜନ | ଟ° /୨ |
| ଅଯୋଧ୍ୟାବୋଇଲି | ଟ° (୬ | ଶ୍ରୀକୃଷ୍ଣଙ୍କ ବାଳଲୀଳା | ଟ° (୨ |
| ଓଲ୍ଟ ଡ଼େ ବୋଇଲି | ଟ° (୬ | ଷୋଳସହସ୍ର ଗୋପୀଙ୍କ ଶୋଭା | ଟ° / |
| ଅଜଶୋକ | ଟ° (୨ | ବୃହତ୍ ସୀତାବିଳାପ | ଟ° ୨ |
| କଳ୍ପଯୁଗ ୩ୟ ଖା | ଟ° (୨ | ସୁଭଦ୍ରାଦେଇ ଶୋଭ | ଟ° (୧ |
| ତୁଳସୀଦେଇଙ୍କାନ | ଟ° (୧ | ମାରସାଗର ବୋଇଲି | ଟ° (୩ |
| ଜମ୍ବୁମାମୁ | ଟ° (୨ | ସୀତାଦେଇ ବାନ | ଟ° (/ |
| ଦ୍ୱିଭଦ୍ରଗୀତାସମ୍ପୂର୍ଣ୍ଣ | ଟ° ✓ | ଶ୍ରୀକୃଷ୍ଣଙ୍କ ଗର୍ଭମଧ୍ୟେ ଯଶୋଦାଙ୍କର ବ୍ରହ୍ମାଣ୍ଡ ଦର୍ଶନ | ଟ° (୭ |
| ନୂଆବୋହୂବାନ | ଟ° (୦ | ପଦ୍ମ ତୋଳା ପୁରାଣ | ଟ° ।✓ |
| ତରୁଣ ଘର ଘଷ୍ଟନ | ଟ° / | ଭଗବତ ବୋଇଲି | ଟ° (୨ |
| ଭକ୍ତ ଉଦ୍ଧାରଣ ଗୀତା | ଟ° (୬ | ପଞ୍ଚସମିଳନ ନାଟକ | ଟ° ।✓ |
| ଭଗବତୀ ଭଜନ | ଟ° / | | |

ଅରୁଣୋଦୟ ପ୍ରେସ
ବାଲୁବଜାର କଟକ }
ପ୍ରୋପ୍ରାଇଟର—
ଶ୍ରୀ ନିତ୍ୟାନନ୍ଦ ସାହୁ ।